ପ୍ରିୟା ପ୍ରତି

ଛନ୍ଦ: ବସନ୍ତତିଳା ତଭଜା ଜଗୌ ଗଃ

ବର୍ଣ୍ଣ: **221/211/121/121+22**

ଘୋରା ତମିସ୍ର ହଟିଲା ଦିଶିଲେଣି ତାରା
ଦୂରେ ସୁଦୂର ଗଗନେ ଅରୁଣ ପ୍ରଭାସେ ।
ଦେଖ ପ୍ରମୁକ୍ତ ନୟନେ ସହସା ପ୍ରିୟା ଗୋ
ପ୍ରକ୍ଷିପ୍ତ ତପ୍ତ ଉପଳ ଦ୍ୟୁପଥ ପ୍ରକାଶେ । **01**

ଯାତ୍ରୀଙ୍କ ରାତ୍ରିବସଥେ କହିଲାଣି କେହି
ଏ ଦ୍ୱାର ଖୋଲ ରହିବେ ନବ ଯାତ୍ରିବର୍ଗ ।
ଏବେର ଆଶ୍ରିତ ଯିବେ ନିଜ ଭାଗ୍ୟ ନେଇ;
କାହାର ମାର୍ଗ ଅଧୁରା ସରିବ ପ୍ରିୟା ଗୋ । 2

ଜାଗେ ନବୀନ ହୟନେ ଉଷରଶ୍ମିପାତେ
ନାନା ନବୀନ ବିଚି ମାନସ ସିନ୍ଧୁନୀରେ ।
ଶଙ୍କାଭରା ଜଗତରେ ନିରତ ପ୍ରିୟା ଗୋ
ଏ ଚିତ୍ତ ଧାବିତ ସୁଚଞ୍ଚଳ ସେ ଅଧୀରେ । 3
ହୟନ= ବର୍ଷ, **year;**

ହେମାଙ୍ଗ ସୌଧନଗରୀ-ମଣି-ମୋତି-ରତ୍ନ
ଉତ୍ତାଳ ସିନ୍ଧୁ ଲହରେ ଉଦକେ ନିମଗ୍ନ ।
ଉଦ୍ୟାନପଲ୍ଲବଶିରେ ଫୁଟିଲା ପ୍ରିୟା ଗୋ
ଉତ୍‌ଫୁଲ୍ଲ ଏ ସୁମନ ମୋ କବିତାବିମଗ୍ନ **। 4**

ପ୍ରିୟା ପ୍ରତି

ପ୍ରାଚୀନ ରାଜ୍ୟ ଅଧିରାଜର ନାହିଁ ଚିହ୍ନ
ନାହାନ୍ତି ଦିଗ୍‌ବିଜୟମଣ୍ଡିତ ଚକ୍ରବର୍ତ୍ତୀ
ଧତ୍ତୂର ତାଳବନ ଭୂମିଗତ ପ୍ରିୟା ଗୋ ।
ସେ ସୌମ୍ୟ ମାଦକ ଝରାଉଛି ସେହି ପତ୍ତ୍ରୀ । 5
ପତ୍ତ୍ରୀ= ମଞ୍ଜରୀ;

ସେ ଛନ୍ଦ ଗାୟନ ମଳା ବହିରେ ପ୍ରିୟା ଗୋ
ତା ମନ୍ତ୍ର ସାଧନ ଅତୀତର ଲୁପ୍ତ ଅଙ୍ଗେ ।
ତୋ ରକ୍ତିମା ଦିଅ - କହେ ବିହଗ ପ୍ରସୂନେ
ତୋ ପ୍ରେମ ଚିହ୍ନ ରଖ ମୋହର ଓଷ୍ଠରାଗେ । 6

ଏ ରାତ୍ରି ଏ ଦିବସ ଏ ଋତୁ ମାସ ବର୍ଷ
ସର୍ବେ ଚଳନ୍ତି ବହୁ ଦୂରକୁ ଶୀଘ୍ର ଆଗେ ।
ନେତ୍ରାଗ୍ରତଃ ତୁମର ଦେଖ ଥରେ ପ୍ରିୟା ଗୋ
ଉପୃକ୍ଷ କାଳବିହ ତପୃର ତାଠୁ ବେଗେ । 07

ଏ ପୁଷ୍ପ ହାସ୍ୟ ଉଚ୍ଛୁଳେ ରଜନୀ ବିଦାରେ
ସନ୍ଧ୍ୟାର ଆଗମନରେ ଯିବ ମାଟି ତଳ୍ପେ ।
ଯେତେକ ଯୋଦ୍ଧୃକୁଳ ବୀରପଣ ପ୍ରିୟା ଗୋ
ଭାଗ୍ୟ ଶ୍ମଶାନକୁତପେ ଜଳିବାର ଦର୍ପେ । 8
କୁତପ= ନିଆଁ;

ଯୋଦ୍ଧାଙ୍କୁ ତେଜି ଚଳ ସେ ଝରନୀର ଧାରେ
ଏ ବୀରବର୍ଗ କରଣେ ଧରିଥାନ୍ତୁ ଶସ୍ତ୍ର ।
କାଳପ୍ରବାହ ମୁଖରେ ତୃଣ ସେ ପ୍ରିୟା ଗୋ
ଅଙ୍ଗାର ହେବ ସବୁ ସୁନ୍ଦର ବୀରବସ୍ତ୍ର । 9

ଏ ପାଖରେ ସବୁଜ ଶସ୍ୟର ନୃତ୍ୟଶାଳା
ସେ ପାଖ ନିର୍ଜଳ ଧରା ଉପଳ ପ୍ରସାର ।
ଏ ଶୀତ ବାୟୁ ଲହରେ ବସ ମୋ ପ୍ରିୟା ଗୋ
ଅପ୍ରାପ୍ତ ଏଠି ନୃପ ଭୃତ୍ୟ କି ସେ ବିଚାର ।10

ହସ୍ତେ ସୁରା ଘଟକଟେ ଧରି ଆସ ସାଥୀ
ଆହାର ପାତ୍ର ଯତନେ ଧରି ଏକ ସଙ୍ଗେ ।
ସଙ୍ଗୀତ ପୁସ୍ତକଟିଏ ଧରି ଥା ପ୍ରିୟା ଗୋ
ସେ ଗୀତ ମୂର୍ଚ୍ଛନ ସଦା ଛୁଟି ଚାଲୁ ରଙ୍ଗେ । 11

ଭାଳେ କିଏ ଦିବସ ଆଜିକ ରଙ୍ଗବୋଳା
ଦେଖେ କିଏ ପରତ୍ର ହର୍ଷିତ ବାଦ୍ୟତାରେ ।
ସଙ୍ଗୀତ ସାମ୍ପ୍ରତିକ ଶୀଘ୍ର ଛୁଟୁ ପ୍ରିୟା ଗୋ
ବୈତାଳିକଙ୍କ ନିଷଦ ଭ୍ରମ ଆଉ ଦୂରେ ।        **12**

ଗୋଲାପ ପୁଷ୍ପକଳିକା ରହି ବୃକ୍ଷଶାଖେ
ଡାକେ କିଏ ମହକ ମୋ ନିଅ ତୋଳି ପାଶେ ।
ମୋ ପାଖୁଡା ଦବ କି ବିଞ୍ଚି ମଲେ ମୁଁ ପାଖେ !!
କେବେ ପ୍ରିୟା ଯିବି ମୁଁ ସେ ଅଜଣା ନିବାସେ । 13

ଏ ପାଂସୁପୂର୍ଣ୍ଣ ତଳପେ ଗଢି ଗାଲିଚାଟେ
ଅତ୍ୟଳ୍ପ କାଳର ହିମାବରଣ ପ୍ରକାରେ ।
ଆଶାର ସାରସ ଜଳାଶୟ ଦେଖୁ ଦେଖୁ
ଯାଏ ପ୍ରିୟା ଉଡି ନିକାଶର ଆର ପାରେ ।14

ନିକାଶ=  ଦିଗ୍‌ବଳୟ;

ସମ୍ପନ୍ନନିର୍ଦ୍ଧନ ଯିବେ ଜଳି ଶେଷ କାଳେ
ଯେ ଅଗ୍ନିରେ ନ ଥିବ ମୋହନ ଶକ୍ତି ଏତେ;
ବାରେ ଯିଏ ଜଳିବ, ଚାହିଁବ ସେ ପ୍ରିୟା ଗୋ -
ମୋତେ ଅନେକ ଥର ଜାଳିବ ଏହିମନ୍ତେ । 15

**L. Kabi 2023-11-18/07:05-1828**

ରାତ୍ରୀ ଦିବା ଗଗନ ଭୂତଳ ସର୍ବଭାଗେ
ସଂସକ୍ତ ଚାଲିଛି ସଦା ଚତୁରଙ୍ଗ ଖେଳା
ଭୂପାଳ ସୈନ୍ୟ ଗଜ ଅଶ୍ୱ ରଥୀ ପ୍ରିୟା ଗୋ
ସର୍ବେ ନିମଗ୍ନ ଶୟନେ ଚଢି ମୃତ୍ୟୁଭେଳା । 16
ସଂସକ୍ତ= ନିରନ୍ତର;

ରାଜାଧିରାଜ ଧିଷଣେ କରୁଛନ୍ତି ନୃତ୍ୟ
ଆରଣ୍ୟ ଡିମ୍ବଜ ପଶୁ ଦ୍ୱିଜ ସର୍ପ ସର୍ବେ ।
ପ୍ରସ୍ତାବ ବର୍ଷୁଛି କିଏ ମଳ କେ ପ୍ରିୟା ଗୋ
ରାଜା ପଢେ ନବରସ ପ୍ରମୟା ପ୍ରଭାବେ । 17
ଧିଷଣ= ଆସନ; ପ୍ରମୟା= ମୃତ୍ୟୁ;

ଏ ରକ୍ତରଙ୍ଗ କସୁମେ ଥିବ ରକ୍ତଧାରା
ବୀରଙ୍କ ଦେହରୁ ଝରା ରୁଧିର ପ୍ରତପ୍ତ ।
ହେଲେ ସୁବାସିତ ଧଳା ଫୁଲରେ ପ୍ରିୟା ଗୋ
ପ୍ରେମୀର ରକ୍ତକଣିକା ଥିବ ସଦ୍ୟସିକ୍ତ । 18

ଏ ସ୍ରୋତ-ଧାର-ପୁଳିନେ ବହୁ ପୁଷ୍ପଶୋଭା
ଆହା କି ରଙ୍ଗ-ବିଭବେ ମହକେ ବତାସେ ।
ଧୀରେ ପକାଅ ପଦ ସେ ଯବସେ ପ୍ରିୟା ଗୋ
ପ୍ରେମୀ କିଏ ଥିବ ସୁନିଦ୍ରିତ ଆୟୁ ନାଶେ **। 19**

ପ୍ରିୟା ପ୍ରତି

ଯେ ମାଧୁରୀ ସକଳ ଦୁଃଖ ରଖେ ସୁଦୂରେ
ଯେ ଶୀଘ୍ର ବିସ୍ମୃତ କରେ ଗତ ଶୋକ ରାଶି
ସେ ମାଦକେ ହୃଦୟ ମୋ ଭରି ଦେ ପ୍ରିୟା ଗୋ
ମୋ ଆନନେ ଦିଅ ତୁ ସେ ମଧୁପାତ୍ର ଆସି । **20**

ଯେ ମଦ୍ୟ ପାନ କରି ଆମର ପୂର୍ବଲୋକେ
ସର୍ବେ ଗଲେ ବହୁତ ଦୂରକୁ ଶୂନ୍ୟମାର୍ଗେ
ସେ ମଦ୍ୟ ମୋ କଳସରେ ଭରି ଦେ ପ୍ରିୟା ଗୋ
ହେଲାଣି ବେଳ ଯିବି ତାକୁ ମୁଁ ନେଇ ସଙ୍ଗେ ।21

ଏ ଶୂନ୍ୟ ବାସ ରଖି ଆମ ନିମିତ୍ତ ପଶ୍ଚାତ୍
କେ ସ୍ଥାନ ଆମର କଲେ, ଗମି ସେ ସୁଦୂରେ ?
କେ ବଂଶଜ ପ୍ରଚଳ ହେବ ପୁଣି ପ୍ରିୟା ଗୋ
କା ଲାଗି ରିକ୍ତ କରି ବାସ ଯିବା ମହୀରେ । 22

ଏମନ୍ତ ମାଟି ରଖି ନାହିଁ ସମୁଦ୍ରବସ୍ତ୍ରା
ଯା ଗର୍ଭରେ ନର ଥରେ ପଶି ଶୋଇବାରେ
ଏତେ ଲଭେ ସୁଖ କି ସେ କହିବ ପ୍ରିୟା ଗୋ -
ମୋତେ ସହସ୍ର ଥର ପୋତିବ ଏହିଠାରେ । **23**
ସମୁଦ୍ରବସ୍ତ୍ରାଳ= ପୃଥଗବୀ;

**L. Kabi 2023-11-19/02:55-04:26**

କା ସ୍ବପ୍ନରେ ରହିଛି ଶାନ୍ତି ଭବିଷ୍ୟ କାଳେ
ଭାଳେ କିଏ ମିଳିବ ତା ଛବି ବର୍ତ୍ତମାନେ ।
ତା ଦେଖି ତାନ୍ତ୍ରିକ କହେ, ଶୁଣ ମୋ ପ୍ରିୟା ଗୋ -
ଏ ହର୍ଷ ନାଶ ଯିବ ଏହି ଦିବାବସାନେ । 24

## ପ୍ରିୟା ପ୍ରତି

ସଂସାର ତା ପର କଥା ଶୁଣି ତାଙ୍କ ଆଶେ
ଶେଷେ ମୁଁ ଜାଣିଲି ଗଭୀର ବିନେକ ତତ୍ତ୍ୱ -
ନାନାବି ପୁଣ୍ୟ କରି ଶେଷକୁ ମୋ ପ୍ରିୟା ଗୋ
ସର୍ବେ ବିନାଶ ଭଜିବା ଧ୍ରୁବ ଶେଷ ସତ୍ୟ । 25

ଜ୍ଞାନୀଙ୍କୁ ତେଜି ଚଳ ଅନ୍ତବିହୀନ ତର୍କେ
ସେ ଦୂର ସିନ୍ଧୁତଟ ପାବନ ନୀରଧାରେ ।
ଏହାଠୁ ସତ୍ୟ ନ ମିଳେ ଶୁଣି ଥା ପ୍ରିୟା ଗୋ
ପାହାନ୍ତି ପୁଷ୍ପ ଝଡିବା ଥୟ ଏ ନିଶାରେ । 26

ମୋ ଆଦ୍ୟଯୌବନକଥା କହୁଛି ପ୍ରିୟା ଗୋ
ଜ୍ଞାନୀଙ୍କ ମେଳ ଭିତରେ ଶୁଣି ଧର୍ମ ପାଠ ।
ଶେଷେ ମୁଁ  ଦେଖୁଛି ଯିବାକୁ ଥିବା ଦୁଆରୁ
କେତେ ଅଭିନ୍ନ ଥିଲା ଲେଉଟିବାର ବାଟ । 27

ବିଦ୍ୱାନ୍ ଜନଙ୍କ ନିୟମେ ବୁଣି ଦେଲି ମଞ୍ଜି
ସେ ଜ୍ଞାନବୀଜର ଥରେ ଫିଟିଲା ରହସ୍ୟ -
ବନ୍ୟା ସମାନ ଥିଲି ଆସି ମୁଁ ମୋ ପ୍ରିୟା  ଗୋ
ବାତ୍ୟା ସମାନ ଯିବି ଏ ଫଳ ତାର ଶସ୍ୟ । 28

କିମ୍ପାଁ ମୁଁ ଆସିଛି ଜଣା ପଡିଲା ବି ନାହିଁ
ଏ ପ୍ରଶ୍ନ ବାରିତ ଥିଲା ପୃଥିବୀର ପୃଷ୍ଠେ;
ମୋ ଜ୍ଞାନର ପରିସରେ ଉଷିତ ପ୍ରିୟା ଗୋ
ଏହା ପରେ କି ଅଛି ମୋ ପ୍ରତରେ ଅଦୃଷ୍ଟେ । 29

ଉଷିତ= ଅନୁପସ୍ଥିତ;

ପ୍ରିୟା ପ୍ରତି

ଅଜ୍ଞାତ କାରଣ ଵା ଅଜଣା ମହୀରେ
ଆତ୍ମୀୟତା ବଢି ଗଲା, ମନ ଆଜ ବନ୍ଧା ।
ଦ୍ରାକ୍ଷାରସେ ଲଭିଲି ଯେ ମଦିରା ପ୍ରିୟା ଗୋ
ସମ୍ମୋହନେ ରହିଲି ଶୃଙ୍ଖଳ ମୋଠି ଛନ୍ଦା । 30

ଇନ୍ଦ୍ରଙ୍କ ଆସନ ପରେ ବସିଛି ଦ୍ୟୁମାର୍ଗେ
ବ୍ରହ୍ମାଣ୍ଡ ସପ୍ତ ଉପରେ ଇହଲୋକ ତେଜି ।
ନାନାଦି ବିଘ୍ନ ପଥରେ ହଟି ବି ପ୍ରିୟା ଗୋ
ବ୍ୟାପାଦ, ଭାଗ୍ୟର ନ ପାରିଲି ମାର୍ଗ ହେଜି । 31
ବ୍ୟାପାଦ= ମୃତ୍ୟୁ;

ଯେ ଦ୍ଵାର ପାଇଲି ମୁଁ ତା ରହିଲା ଅଭେଦ୍ୟ
ତା ଚାବି କେଉଁଠି ଥିଲା ମିଳିଲା ତ ନାହିଁ ।
ପର୍ଦ୍ଦାର ସେ ପଟ ଥିଲା ମୁଖ ଯେ ପ୍ରିୟା ଗୋ
ବାର୍ତ୍ତା କ୍ଷଣେ କରି ସିଏ ହଜିଲା ବି କାହିଁ । 32

ନୀଳାମ୍ବରେ କହି ଥରେ - ଦିଅ ମୁକ୍ତି ମାର୍ଗ ।
ଏ ଉତ୍ତର ପ୍ରବଳ ପାଇଲି ତୀବ୍ର ନାଦେ -
ମୋ ଚକ୍ଷୁବନ୍ଧନ ସଦା ଥିବ ମୋ ପ୍ରିୟା ଗୋ,
ତ୍ରାତା କିଏ ନ ମିଳିବେ ସଢିଲେ ବିଷାଦେ । 33

ଏ ମୃତ୍ତିକା ଯଦି ବି ମୋ ଅଜଣା ଅଚିହ୍ନା
ମୋତେ ଥରେ କହୁଥିଲା ଗହନ ପ୍ରଭାଷ -
ମୋ ଦେହରେ ପିଅ ସୁରା - କହିଲା ପ୍ରିୟା ଗୋ,
ହେଲେ ବିଦାୟ ଭୁଲି ଯା ମଦିରାର ଆଶ । 34
ପ୍ରଭାଷ= **doctrine,** ସିଦ୍ଧାନ୍ତ;

ହେଲା ପ୍ରତେ ଖୃଳ ଦିନେ ଥିବ ଜୀବଧାରୀ
ନିଶ୍ଚେ ସିଏ ବି ଦରଦୀ ଥିବ ମୋ ସମାନ ।
ତାହାକୁ ତୁମ୍ଭି ମୁଁ ସରାଗ ଭରେ ପ୍ରିୟା ଗୋ
ସେ ମୋଠୁ ଭିନ୍ନ ନ ଥିଲା - ଲଭିଲି ପ୍ରମାଣ । 35
ଖୃଳ= ମାଟି;

ଜ୍ୟୋସ୍ନାବିଧୌତ ନିଶିତେ ଶୁଭ ସାୟ କାଳେ
ଚକ୍ରୀ ଘରେ ଘଟଟିଏ କହିଲା ଥରେକ -
ଧୀରେ ପ୍ରହାର କର ସେ କହିଲା ପ୍ରିୟା ଗୋ -
ତୋ ପଞ୍ଜରା ଥିଲି ଦିନେ ଭଲରେ ତୁ ଦେଖ । 36
ନିଶିତା= ରିତି; ସାୟ= ସଞ୍ଜ; ଚକ୍ରୀ= କୁମ୍ଭାର;

ଏ ସଦ୍ୟ ବାସର ନିଜେ ରଖ ହର୍ଷପୂର୍ଣ୍ଣ
ଅତ୍ୟନ୍ତ ଶୀଘ୍ର ନିତି ଏ ସମୟପ୍ରବାହ ।
ଯା ଦେବ ଭୂତ କି କଥା କହିବି ପ୍ରିୟା ଗୋ
ଆଗେ ଭବିଷ୍ୟ ବି ସଦା କରିବ ପ୍ରହାର ।37
ସଦ୍ୟ ବାସର= ନୂଆ ଦିନ;

ଏ ପ୍ରାଣ ସଞ୍ଚରି ଥରେ ପୁଣି ନାଶ ଯାଏ
ରାତ୍ରୀ ଗତେ ଶୁଣ ତୁମେ ମରୁମାର୍ଗ ଯାତ୍ରୀ ।
କେଉଁ ପ୍ରଭାତ କି କଥା ଘଟିବ ପ୍ରିୟା ଗୋ
ସର୍ବତ୍ର ଘଞ୍ଚ ନିଶିତା ଭରି ଦେବ ଧାତ୍ରୀ । 38,
ନିଶିତା= ରାତି;

ଏ ଅସ୍ତିନାସ୍ତି ବିଷୟେ ଅସରନ୍ତି ଚର୍ଚ୍ଚା
ନାନାଦି ତର୍କ କରି ସେ ଛିଡିବାର ନାହିଁ ।
ଯା ଲବ୍ଧ ଏହି ମଦିରା ଘଟକେ ପ୍ରିୟା ଗୋ
ସେ ତର୍କରେ କିଛି ଦିନେ ମିଳିବାର ନାହିଁ । 39

## ପ୍ରିୟା ପ୍ରତି



ଆଗେ ବି ଏ ବିଷୟରେ କହିଛି ପ୍ରିୟା ଗୋ -
ନାନା ବିଚାର କରି ମୋ ଘରୁ ଶାସ୍ତ୍ର ଲେଖା
ଦୂରେ ବିତାଡନ କରି ପ୍ରଥମେ ସରାଗେ
ଦ୍ରାକ୍ଷା ରସାର ଦୁହିତା ସହ ହେଲି ଦେଖା । 40
**L. Kabi 2023-11-20/05:35**

ନୀଚୋଚ୍ଚ ମାପି ସବୁ ପାର୍ଶ୍ୱର ଆଙ୍କି ଚିହ୍ନ
ମୋ ଦୀର୍ଘ ଜୀବନ ଗଲା ବିତି କର୍ମ ଭାରେ ।
ତତ୍ରାପି ଅନ୍ତର ତଳେ ଥିଲି ମୁଁ ପ୍ରିୟା ଗୋ
ଅତ୍ୟନ୍ତ ମତ୍ତ ମମତା-ମଦିରା ନିଶାରେ । **41**

ମୋ ବାସରେ ଥରଟିଏ ଘନ ଅନ୍ଧକାରେ
ଦେଖା କଲେ ଜନହିତପ୍ରିୟ ଦେବଦୂତ ।
ମୋ ମଦ୍ୟପାତ୍ର ଭିତରେ ଭରିଲେ ପ୍ରିୟା ଗୋ
ପ୍ରେମପ୍ରମତ୍ତ ମନରେ ମଦିରା ଉଦାତ୍ତ । **42**
ଉଦାତ୍ତ= ଦାନ, ଦକ୍ଷିଣା, **donation;**

ଚୌରାଶି ଲକ୍ଷ ଜନମେ ତିନି ଲୋକ ମଧ୍ୟେ
ପ୍ରାଣୀ ବିମୁଗ୍ଧ ଟିକିଏ ଲଭି ଯାର ଗନ୍ଧ ।
ସେ ମଦ୍ୟ ସତ୍ୟ ଜଗତେ ଶୁଣି ଥା ପ୍ରିୟା ଗୋ
ତାହା ହିଁ ଲକ୍ଷ୍ୟ ସବୁରି ପ୍ରିୟ ସେହି ନନ୍ଦ । **43**
ନନ୍ଦ= ଆନନ୍ଦ;

ବୀରଙ୍କ ରକ୍ତ ଯହିଁରେ ଅତି ଧୀର ଶାନ୍ତ
ଯେ ସୋମ ପାନରୁ ଜନେ ବସୁଧାବିଜେତା ।
ଏକତ୍ର ଆସ ନିକଟେ ଥରଟେ ପ୍ରିୟା ଗୋ
ତାହାକୁ ପାନ କରିବା ବଢିବ ପ୍ରମତ୍ତା **। 44**

## ପ୍ରିୟା ପ୍ରତି

ଜ୍ଞାନୀଙ୍କୁ ତେଜି ଚଳ ସେ ତଟିନୀର ଧାରେ
ସେ ଜ୍ଞାନଯୁଦ୍ଧ କରିବେ ସହଜ ସ୍ୱଭାବେ ।
ଯେ ସ୍ୱଳ୍ପ ଖାଦ୍ୟ ଅଛି ତା ଧରି ଥା ପ୍ରିୟା ଗୋ
ସାନନ୍ଦ ଭୁଞ୍ଜି ସକଳେ ବସି ସେହି ଠାବେ । 45
**L. Kabi 2023-11-20/17:37**

ନୀଚୋଚ୍ଚ ପୂର୍ବ ଅପରାନ୍ତର ମୋ ପ୍ରିୟା ଗୋ
ସର୍ବତ୍ର କେବଳ ଭରା ଲଘୁଗଳ୍ପ ଭାରେ ।
ସିନ୍ଦୂର ଦର୍ବି ଭିତରେ ଅସୁରୀର କେଶ
ସେ ସ୍ଥାନ ସର୍ବସମୟେ ଘନ ଅନ୍ଧକାରେ । 46
ଦର୍ବି= **a container,** ଡବା;

ଦ୍ରାକ୍ଷାର ମୋହନ ନିଶା, ଅଭିକା-ସରାଗ,
ନିଶ୍ଚେ ସମସ୍ତ ହଜିବେ ସହସା ସୁଦୂରେ ।
ଅଭ୍ୟନ୍ତରେ ରହିଛି ଶୂନ୍ୟ ହୃଦ ପ୍ରିୟା ଗୋ
ଅଚ୍ଛେଦ୍ୟ ସେ ରହିବ ତା ନିଜ ଶୂନ୍ୟତାରେ । 47

ଏ ଜୀବନେ ରହିଛ ଏ ମଧୁଲଗ୍ନ କାଳେ
ଏକତ୍ର ଆସ ସକଳେ ମଦିରାର ପାତ୍ରେ ।
ଦ୍ୱାରେ ପ୍ରହାର କରୁ ସେ ମରଣ ପ୍ରିୟା ଗୋ
ଆନନ୍ଦଚିତ୍ତ ଯିବ ତା ସହ ସେ ନିଶାରେ । 48
ନିଶା= **hangover,** ମଦାଳସ;

ସଂସାର ଭାଗ୍ୟ ନିକଟେ ଚତୁରଙ୍ଗ ଖେଳ
ନାରୀନରଙ୍କ ବହୁଜନ୍ୟ ହିଁ ତାର ଗୋଟି ।
ଏ କ୍ଷେତ୍ରୁ ଅନ୍ୟଠି ଚଳାଇ ରଖେ ପ୍ରିଆ ଗୋ
ଗୋଟେଇ ପେଟି ଭିତରେ ପୁଣି ଗୋଟି ଗୋଟି । 49
ବହୁଜନ୍ୟ= ଭିଡ;

କ୍ରୀଡାର କନ୍ଦୁକ କି ରାଜି-ଅରାଜି ଜାଣେ
ଯେଣେ ପ୍ରହାର ପଡିଲା ଗଡି ଚାଲି ଥାଏ ।
ବିକ୍ରୀଡ ଯେ ଗଢିଛି ତାକୁ ଜଣା ପ୍ରିୟା ଗୋ
ଏ ଖେଳରେ କିସୁଖ କେଉଁଠୁ ସେହି ପାଏ । 50
ବିକ୍ରୀଡ= କଣ୍ଢେଇ;

**L. Kabi 2023-11-24/22:24**

ପ୍ରଚ୍ଛନ୍ନ ଲେଖୁଛି କିଏ ବସି ପୃଷ୍ଠ ଭାଗେ
ପର୍ଯ୍ୟାପ୍ତି-ଦୁର୍ଗତି କଥା ପ୍ରତି ଜୀବ ଭାଗ୍ୟେ ।
କା ଅଶ୍ରୁ, ପୁଣ୍ୟ, ନ ଶୁଣେ କିଛି ସେ ପ୍ରିୟା ଗୋ
ଲେଖେ ଭବିଷ୍ୟ ଘଟନା ଘଟିବାକୁ ଆଗେ । **51**
ପର୍ଯ୍ୟାପ୍ତି= ମୃତ୍ୟୁ;

ଯେ ନୀଳ ଗମ୍ବୁଜ ତଳେ ତୁମ ଆତଯାତ
ଅତ୍ୟନ୍ତ ତୁଚ୍ଛ ତନୁରେ ବସୁଧାର ବକ୍ଷେ ।
ତୋଳି ସ୍ୱହସ୍ତ କିଛି ତାକୁ ନ ମାଗ ସାଥୀ
ସେ ମଧ ଭାଗ୍ୟ କବଳେ ତୁମ ମୋ ସମକ୍ଷେ । 52

ଏ ସୃଷ୍ଟି ଆଦ୍ୟ ଦିବସେ ବହି ଘେନି ହାତେ
ସେ ଆଙ୍କି ଦେଇଛି ସଭିଙ୍କର ଭାଗ୍ୟରେଖା ।
ପ୍ରାଣୀ ସଭିଙ୍କ ଭବିତବ୍ୟ କଥା ପ୍ରିୟା ଗୋ
ଆଦିପ୍ରଭାତୁ ଅଛି ଅନ୍ତିମ ଗୀତ ଲେଖା । । 53

ମୋ ଅନ୍ତଚିତ୍ର ଅଛି ସେ ବହି ଏକ ପତ୍ରେ
ଅତ୍ୟନ୍ତ ନିର୍ମମ କରେ ତିଥି ବାର ମାସ ।
ରକ୍ତାକ୍ଷ ବାହନ ପରେ ବସିଛି ପ୍ରିୟା ଗୋ
ସେ ଚିତ୍ରଗୁପ୍ତ ଯମରାଜର ଆପ୍ତ ଦାସ । 54

ଯାହାର ଛାଦନ ପରେ ଆଛି ସୂକ୍ଷ୍ମ ଆଶା
ସେ ଦ୍ୱାର, ଯାର ନ ମିଳେ ଫିଟିବାର କୁଞ୍ଚୀ ।
ମୋ ଅସ୍ଥି ଖଣ୍ଡରୁ କିଏ ଗଢିବ ପ୍ରିୟା ଗୋ
ସେ ଦ୍ୱାର ମୁକ୍ତ କରିବା ପରି ଏକ କୁଞ୍ଚୀ । 55

**L. Kabi 2023-11-25/03:25**

ଏକ ସ୍ଫୁଲିଙ୍ଗ ନ ମିଳେ ଦ୍ୟୁତି ପାନ୍ଥଶାଳେ
ଦେବାଳୟେ ରହି ଥିଲେ ଲୁଚି କେଉଁ କାର୍ଯ୍ୟ ।
ହାତେ ଥିବା ସୁମନକ ପ୍ରିୟ ମୋ ପ୍ରିୟା ଗୋ
ସ୍ୱର୍ଗସ୍ଥ ନନ୍ଦନବନେ ସୁଖ କା ବିଚାର୍ଯ୍ୟ । 56

ସର୍ବତ୍ର ପାପ ଭରି କେ ରଖିଲା ନୃଲୋକେ
ତା ଅଗ୍ରତେ ନତ ସିନା ନର ଜନ୍ତୁ ପକ୍ଷୀ ।
ତତ୍ରାପି ଭୀତି ମନରେ ବହୁଧା ପ୍ରିୟା ଗୋ
ପାପୀ ବିଚାରିବ ତ କେ ଥିବ ମୋର ସାକ୍ଷୀ । 57

ଏ ପାପ ଆସ୍ତରକୁ ସେ ରଖିଲା ବିଛାଇ
ଯେବେ କିଏ ପୟର ତାର ଦିଏ ଖସାଇ
କିମ୍ବା ସିଏ ଲଭିବ ପାପଫଳ ପ୍ରିୟା ଗୋ
ତା ମାର୍ଜନା ପଥ କିଏ କହିବାକୁ ନାହିଁ । 58

ଜ୍ୟୋସ୍ନା ବିଧୌତ ନିଶିତା ଭିତରେ ଥରେକ
ଚକ୍ରୀ କୁଲାଳକୁଟିରେ ଘଟ ଏକ ଏକ
ଆଳାପ ଯା କରୁଥିଲେ ଶୁଣିଲି ପ୍ରିୟା ଗୋ
ସର୍ବେ ପରସ୍ପର ତୁଲେ ମଦିରାର ଟେକ । 59

ପ୍ରିୟା ପ୍ରତି

ସନ୍ତର୍ପଣେ ରଖୁଥିଲା ନିଜ ଉକ୍ତି କେହି
ସୁସ୍ପଷ୍ଟ ବାକ୍ୟ କହି କେ ରଖିଲା ସ୍ୱ ଭାଷ୍ୟ
ଆରମ୍ଭରେ ଘଟଟିଏ କହିଲା ପ୍ରିୟା ଗୋ
କେ କୁମ୍ଭ, କୁଲାଳ କିଏ, କହ ସେ ରହସ୍ୟ । 60

**L. Kabi    2023-11-25/20:25**

ଆରେକ ପାତ୍ର କହିଲା - ଗଢି ଏକ ପାତ୍ର
ସ୍ରଷ୍ଟା ନିଜେ କିପରି ତାକୁ କରେ ପ୍ରହାର ।
ସେ କୁମ୍ଭକାରକୁ ଜଣା ନ ଥିବ ପ୍ରିୟା ଗୋ
ନିର୍ଭିନ୍ନ କୁମ୍ଭକଠୁ ତା ପ୍ରଭୁ କୁମ୍ଭକାର । 61

ପାର୍ଶ୍ୱସ୍ଥ ପାତ୍ର ଶୁଣି ଭାଷୁଛି ଦୁଃଖବାର୍ତ୍ତା -
ମୋ ଠାରୁ ସେବି ମଦିରା ମତିହୀନ ପାତା
ମୂଢତ୍ୱରେ ଘଟକୁ ଭାଙ୍ଗି ଦିଏ ପ୍ରିୟା ଗୋ
ପିଣ୍ଡେ, ଘଟେ କି ନ ବୁଝେ ସମ ଏକ ସତ୍ତା । 62
ପାତା (ପାତୃ ଶବ୍ଦରୁ)= ପାନକର୍ତ୍ତା;

ତା ପ୍ରଶ୍ନରେ ନିରବତା ରହିଲା ବି ଦଣ୍ଡେ
ଚିନ୍ତା ନମଗ୍ନ ସକଳେ ଘଡିଏ ସକାଶେ ।
କର୍ଣ୍ଣେ ପ୍ରଚଣ୍ଡ ଶୁଭିଲା ସହସା ପ୍ରିୟା ଗୋ
ସେ କୁମ୍ଭକାର ବିକଳେ, ଥରି ହାଡମାଂସେ । 63
**L. Kabi    2023-11-25/23:25**

ଦଣ୍ଡେ ପରେ କହୁଛି ଅନ୍ୟ ଘଟ ପ୍ରମାଦେ -
ରକ୍ଷୀ କଥା କହୁଥିଲେ ପଛ ପାନ୍ଥଶାଳେ,
ନୂଆ ସଜାଇ ରଖିବେ ଘର ସେ ପ୍ରିୟା ଗୋ
ହେଲେ ପୁରାତନ ବି ଲାଗିବ ସଦ୍ୟ କାଳେ । 64

ତା ପାଖ ପାତ୍ର ମଦିରା ଇତି ତାର ବୋଲି
ଭାଷେ ସୁରା କିଛି ଗଳେ ଦିଅ ମୋର ଢାଳି ।
ସେ ଉତ୍ସୁକେ ରଖିଥିଲା ଭରସା ପ୍ରିୟା ଗୋ -
କାଳେ କିଏ ଚଷକପାତ୍ରଟି ଦେବ ଖୋଲି । 65

ଏଣେ କଥା କହୁଥିଲେ ସବୁ ସେହି ମାଟି
ତେଣେ କୁଲାଳ ନିରବେ ଶୁଣି ତାଙ୍କ ପାଟି,
ତତ୍କାଳ ଶବ୍ଦ ଶୁଭିଲା ତୁମୁଳ ପ୍ରିୟା ଗୋ -
ସେ କୁମ୍ଭକାର ତନୁ ରୀଢକ ହାଡ ଫାଟି **। 66**
ରୀଢକ= ମେରୁଦଣ୍ଡ;

**L. Kabi 2023-11-26/01:26**

ଏ ପ୍ରାଣ ଅନ୍ତ ଘଟିଲେ ତନୁ ମୋର କେହି
ବନ୍ୟା ସୁରାର ସଲିଳେ ଭଲ ଧୋଇ ଧାଇ
ସେ ବୃକ୍ଷପତ୍ର ଗହଳେ ରଖି ମୋ ପ୍ରିୟା ଗୋ
ଶଯ୍ୟା ପରେ ତନୁକୁ ମୋ ରଖି ଦେବ ନେଇ ।।67
ବନ୍ୟ= ଆରଣ୍ୟ, ସ୍ତ୍ରୀ. ବନ୍ୟା;

ଉଦ୍ୟାନପତ୍ରଗହଳେ ରହି ମୋର ଦେହ
ତା ପୁଷ୍ପଗନ୍ଧ ଭିତରେ ଭରୁ ତା ସୁଗନ୍ଧ ।
ବିସ୍ତାରି ହର୍ଷିତ କଲେ ପଥିକେ ପ୍ରିୟା ଗୋ
ଏ ଜନ୍ମ ଶେଷ ଲଭୁ ତାର ବି ଶେଷ ନନ୍ଦ ।।68
ନନ୍ଦ= ହର୍ଷ, ଆନନ୍ଦ, **joy;**

**L. Kabi 2023-11-26/18:26**

ପ୍ରିୟା ପ୍ରତି

## ପ୍ରିୟା ପ୍ରତି



ଏ ଜୀବନେ ବହୁତ ପୂଜି ମୁଁ ଦେବମୂର୍ତ୍ତି
ନିନ୍ଦା ଛଡା କିଛି ବି ପାଇଲି ନାହିଁ କେବେ ।
ସମ୍ମାନହାନିରୁ ସଦା ଲଭିଛି ପ୍ରିୟା ଗୋ
ତୁଚ୍ଛା ବିଷାଦ, ପଢ ମୋ କବିତାର ଗର୍ଭେ । 69

ମୌନେ ସିନା ମୁଁ ବିନୟେ ଥିଲି ମୋ ନିବାସେ
ପୂର୍ବେ ବି ଦୁଃଖିତ ମନେ କହି ଏହି ଭାଷା
ଏ ଧୀର ରମ୍ୟ ମଳୟେ ସହସା ପ୍ରିୟା ଗୋ
କେଜାଣି କାହିଁକି ମନେ ଫୁଟିଲାଣି ଆଶା । 70

କେବେ ଉଦାସ ପୁଣି ତୃପ୍ତିର ରଶ୍ମି ପାତେ
ମୋ ପ୍ରାଣ ଅନ୍ତ ସମୟେ ସମୁପେତ ଆଜ ।
ସଂସାର କିନ୍ତୁ ଅଧୁନା ଅଜଣା ପ୍ରିୟା ଗୋ
ସୁବ୍ୟାପ୍ତ ଶୂନ୍ୟ ଗଗନେ ରହି କେଉଁ କାର୍ଯ୍ୟ ।71
ସମୁପେତ= ସମାଗତ;

ପ୍ରେକ୍ଷାଳୟେ ଅଛି କି ବା ସବୁ ଆଜ ଶୂନ୍ୟ
ସାମାନ୍ୟ ହୃଷ୍ଟ କରିବା ମଳୟ ପ୍ରଯାତ ।
ଏ ରଙ୍ଗମଞ୍ଚ ବି ଦିଶେ ଅଧୁରା ପ୍ରିୟା ଗୋ
ସେ ଚୂତକାନନ ଫୁଲେ ଅଳି ରିକ୍ତଗୀତ । 72

ପ୍ରେମେଶ୍ୱରୀଙ୍କୁ କହିଥାନ୍ତି ସତେ ପ୍ରିୟା ଗୋ -
ହେ ପ୍ରେମ-ଈଶ୍ୱରି ! ଥରେ କହ ଖୋଲି ମୋତେ
ବିଶ୍ୱେ ବିଧାନ ରହିଲେ ସବୁ ଆମ ହାତେ ।
ଆମେ କି ନୂତନ ମତେ ବିଧି ଖଞ୍ଜି ଥାନ୍ତେ । 73

**L. Kabi 2023-11-27/01:27**

## ପ୍ରିୟା ପ୍ରତି

ଆସନ୍ନ ସାନ୍ଧ୍ୟ ଗଗନେ ଉଇଁ ଶର୍ବରୀଶ
ମୋ ଶୂନ୍ୟ ବାସକୁ ନିରେଖିବ ଶୂନ୍ୟନେତ୍ରେ ।
ସଙ୍କେତରେ କହିବ ତାକୁ ତୁମେ ପ୍ରିୟା ଗୋ
ସେ ମୋ ସମାଧି ଉପରେ ଥିବ ସେହି ରାତ୍ରେ । 74

ଯେବେ ତୁମେ ଯିବ ସମାଧିର ପାଶ ସାଥୀ
ନିଶ୍ଚେ ମନେ କରି କରେ ଧରି ଏକ ବଂଶୀ
ସେ ମୋ ସମାଧି ନିକଟେ ରଖିବ ପ୍ରିୟା ଗୋ
ଚନ୍ଦ୍ରାର୍କ ଯାବତ ଶୁଣାଇବ ସେ ବି ଗୀତି । 75

**L. Kabi    2023-11-27/02:26**